## ଶ୍ରୀ ଶ୍ରୀ ବାଣୀପୁତ୍ରକୃତ ସ୍ମାର୍ଟ୍ ଆତ୍ମା ଗ୍ରନ୍ଥରୁ

### ଦେହ ଆତ୍ମା ଓ ପରମାତ୍ମା

କଣା ବାଲଟିରୁ ଯଥା ଜଳ ଯାଏ ଝରି ।
ତଥା ଆତ୍ମା ଯାଏ ଜୀର୍ଣ୍ଣ ଶରୀରୁ ନିଃସରି ॥ ୧

ଚକ୍ରବାତେ ଶୁଷ୍କ ପତ୍ର ଉଡିଲା ପରାଏ
ଭାରଶୂନ୍ୟ ଅଜ୍ଞାନାତ୍ମା ଘୂରି ବୁଲୁ ଥାଏ ॥ ୨

ପାରାବାର ଜଳେ ଯଥା ଅଦୃଶ୍ୟ ଲବଣ ।
ତଥା ପରମାତ୍ମା ମଧ୍ୟେ ଆତ୍ମାର ମଜ୍ଜନ ॥ ୩

ଅଥବା ଚାହାର ଗର୍ଭେ ଚାମୁଚେ ଶର୍କରା
ପ୍ରାୟେ ପରମାତ୍ମା ମଧ୍ୟେ ଆତ୍ମା ହୁଏ ଧରା ॥ ୪

ଜଳରେ ମିଶି ବି ଲୁଣ ନ ହୁଏ ନିଶ୍ଚିହ୍ନ
ନିଜ ସ୍ଥିତି ଥାଇ ଆତ୍ମା ତଥା ବ୍ରହ୍ମଲୀନ । ୫

ଜାଣିବାକୁ ଆତ୍ମା ପରେ ସର୍ବ ସଦର୍ଶନ ।
କର ଶୀଘ୍ର "ସ୍ମାର୍ଟ୍ ଆତ୍ମା" ସଦ୍ଗ୍ରନ୍ଥ ପଠନ ॥ ୬

ସତ୍+ ଦର୍ଶନ= ଯାହା ବାସ୍ତବ ସେହି ଜ୍ଞାନ;

ବାଣୀପୁତ୍ର ୨୦୨୨୦୧୧୧୦୯୦୯

**172 Only** ସ୍ମାର୍ଟ୍ ଆତ୍ମା (ଅସମ୍ପୂର୍ଣ୍ଣ)

ସ୍ମାର୍ଟ୍ ଆତ୍ମା
ଅଧ୍ୟାୟ—୧: ଆତ୍ମା ହଜିଛି

ନିର୍ବାଚନଡ୍ୟୁଟିରେ ଯେ ଆତ୍ମା ହଜିଗଲା,
ସେଭଳି ଆତ୍ମାଟେ ଥାଇ କେଉଁ କାର୍ଯ୍ୟ ଭଲା ! ୧
ଭଲ ହେଲା ଏବେ ଆଉ ଆତ୍ମା ଫାତ୍ମା ନାହିଁ,
ଯେ ପାଇଲା ତାକୁ କୀଳା, କରୁ ତ୍ରାହି ତ୍ରାହି |୨
ଗୋଟେ ବୋଲି ଆତ୍ମା ଥିଲା ହଜିଗଲା ଯାଉ,
ଗାଆଁ ଛୁଆ କହିଲେଣି ନେଇଗଲା କାଉ |୩

ସ୍ମାର୍ଟ୍ ଆତ୍ମା

ଅଧ୍ୟାୟ—୨: ଆତ୍ମା କେଉଁଠି ଥାଏ

ଆତ୍ମା ବୋଲି ଜିନିଷଟା    କେଉଁଠାରେ ଥାଏ,
ଦେଖି ହେଲା ନାହିଁ ତାକୁ    ଜମା ଆଜିଯାଏ ।୪
ଦେହ ମଧ୍ୟେ ପଶି କାଳେ    ରହିଥାଏ ଲୁଚି,
ରୂପରଙ୍ଗହୀନ ବୋଲି    ବହିରେ ଲେଖୁଛି ।୫

ସ୍ମାର୍ଟ୍ ଆତ୍ମା

ଅଧ୍ୟାୟ—୩:ଆତ୍ମାର ଆକାର

ଆତ୍ମାର କୁଆଡେ ନାହିଁ    ଆକାରପ୍ରକାର,
ତାକୁ ନେଇ କେତେ କଥା    ଚାଲିଛି ପ୍ରଚାର;୬
କହନ୍ତି  ସେ ବୁଲୁଥାଏ    ଘଟଘଟାନ୍ତର,
ଜଳି ଯାଏ ଦେହ ସିନା,    ସେ ଅବିନଶ୍ୱର ।୭
ହାତୀ ଦେହେ ବଡ ପୁଣି    ପିମ୍ପୁଡିଠି ସାନ,
ସୁବିଶାଳ ବୃତ୍ତ, ଯାର    ନାହିଁ ଅନୁମାନ;୮
ବିଶ୍ୱରେ ସର୍ବତ୍ର କେନ୍ଦ୍ର    ରହିଅଛି ତାର;
ପରିସୀମାହୀନ, ଏତେ    ସେ ବୃହଦାକାର ।୯
ଅତି କ୍ଷୁଦ୍ର ସାଜି କେଉଁ    ମାତୃଗର୍ଭେ  ଆସି
ଛପି ରହେ ସତେ କି ସେ    କୁଖ୍ୟାତ ସନ୍ତ୍ରାସୀ ।୧୦

ସ୍ମାର୍ଟ୍ ଆତ୍ମା

ଅଧ୍ୟାୟ—୪: ସଂଗ୍ରାମୀ ଆତ୍ମା

ଗର୍ଭ ପାଶେ ଲକ୍ଷ ଲକ୍ଷ    ଆତ୍ମାଙ୍କ ସମର,
ସେଥିରୁ ଜଣଟେ କେହି    ତୋଳେ ତହିଁ ଘର ।୧୧
ସେ ଯୁଦ୍ଧରେ ରହିଅଛି    କଠୋର ଶୃଙ୍ଖଳା,
ଜଣେ ଯିବ, ବାକି କହୁ-    ଥିବେ 'ଛାଡିପଳା' । ୧୨
ମାତୃଦେହ ସାରା ଥିବ    ତାର ଆତ୍ମାଟିଏ
ପୁତ୍ର ଆତ୍ମା ନେବ ତହିଁ    ଆଶ୍ରୟ ଟିକିଏ ।୧୩
ବଡ ଏକ ଦେହ ମଧ୍ୟେ    ଛୋଟ ଏକ ଦେହ,
ବଡ ଆତ୍ମା କୁନି ଆତ୍ମା    ମଧ୍ୟେ, ହେବ ସ୍ନେହ ।୧୪
ଗର୍ଭ ପୂରି ଜନନୀର    ହେଲେ ଡେଲିଭେରି
ଟିକି ଆତ୍ମା ବଡ ମଧ୍ୟୁ    ଦେବ ଲମ୍ଫ ମାରି ।୧୫

ସ୍ମାର୍ଟ୍ ଆତ୍ମା

ଅଧ୍ୟାୟ—୫: ଆତ୍ମାର ବନ୍ଦୀଶାଳା

ସେ ଦେହେ ରହିବ ଆତ୍ମା ବଳ ଥିବା ଯାକେ,
ଦେହ ଜଳି ଗଲେ ଆଉ ନ ଯିବ ସେ ପାଖେ ୧୬
କଣା ବାଲଟିରୁ ଯଥା ଜଳ ଯାଏ ଝରି,
ତଥା ଆତ୍ମା ଯାଏ ଜୀର୍ଣ୍ଣ ଶରୀରୁ ନିଃସରି |୧୭
ନିଃସରିଲେ ଆତ୍ମା ଆଉ ହଲେ ନାହିଁ ଗଣ୍ଡି,
ଫେରାଇ ହୁଏ ନା ତାକୁ କାନ୍ଦି ଠିକି ଭଣ୍ଡି |୧୮
ସେ ବେଳେ ଖୋଜନ୍ତି ଜନେ ଏମ୍ବୁଲେନ୍ସ୍-ବାଲା,
ନେବାକୁ ମୃତ ଶରୀର ଦେଇ ଫୁଲମାଳା |୧୯
ଯେତେ ଦେଲେ ଶ୍ରାଦ୍ଧ ପିଣ୍ଡ ବୁଝିବାକୁ ମନ,
ସୂକ୍ଷ୍ମ ଆତ୍ମା ଆହରେ ନା ସ୍ଥୂଳ ଜଳ ଅନ୍ନ | ୨୦
ଜୀର୍ଣ୍ଣ ଦେହ ତେଜି ଆତ୍ମା ଚଳିଲେ ବାହାର,
ସାଥେ ତାର ଘେନି ଯାଏ ସକଳ ସଂସ୍କାର |୨୧
ଶୂନ୍ୟହସ୍ତ ଯାଏ, ପୃଷ୍ଠେ ଲଦି କର୍ମାଶୟ
ଆନ ଗର୍ଭେ ହେବା ଯାଏ ନୂତନ ଆଳୟ |୨୨
ଆତ୍ମାକୁ ବୋଲନ୍ତି ପ୍ରେତ ମରଣର ପରେ,
ଆତ୍ମା ନାମେ ହୁଏ ଖ୍ୟାତ ନବ କଳେବରେ |୨୩
ପୁଞ୍ଜୀଭୂତ କାମ କ୍ରୋଧ ମୋହ ମଦ ଧରି,
ବ୍ୟାକୁଳିତ ଆତ୍ମା ଖୋଜେ ଜନ୍ମିବ କି ପରି |୨୪
ଭୋଗି ଭୋଗି ଜନ୍ମେ ଜନ୍ମେ ଦୁଃସହ ଯାତନ,
ଖୋଜେ ପୁଣି କାରାଗୃହ, ବନ୍ଦୀର ଜୀବନ |୨୫
ଜନ୍ମିବାକୁ ହେଲେ ଆତ୍ମା ଅତି ତରବର,
ଅନର୍ହ କୁଟୁମ୍ବେ ଜନ୍ମ ନିଶ୍ଚିତ ମାତର |୨୬
କୁଟୀରେ ଜନ୍ମୁ କି ଆତ୍ମା ରାଜପରିବାରେ,
ନୂଆ ଦେହ ଭାବି ରହେ ନୂଆ କାରାଗାରେ |୨୭
ହେଉ ସିଏ ନରଶିଶୁ ଅବା ମୂଷାଛୁଆ,
ନୂଆ ଜନ୍ମେ ସଂସାରଟା ଲାଗେ ନୂଆ ନୂଆ |୨୮

ସ୍ମାର୍ଟ୍ ଆତ୍ମା

ଅଧ୍ୟାୟ—୬: ଦୁଃଖୀ ଆତ୍ମା

ଧୀରେ ଧୀରେ ବଢିଚାଲେ ସଂସାର ବନ୍ଧନ,
ତା ସହିତ ବଢୁ ଥାଏ ଦୁଃଖ ନିର୍ଯାତନ | ୨୯
ତଥାପି ତୃଷିତ ଆତ୍ମା ଈପ୍ସିତ ଆଶାରେ
ନିଜେ ଆସି ବନ୍ଦୀ ହୁଏ ଦେହକାରାଗାରେ |୩୦
ଏ ପରି ସେ କାରାଗୃହ, କେହି ନାହିଁ ରକ୍ଷୀ
ତଥାପି ଯାଏନା ଉଡି ତହୁଁ ପ୍ରାଣ ପକ୍ଷୀ |୩୧
ଭଲ ଲାଗେ ତାକୁ ସେହି ବନ୍ଦୀର ସଦନ,
ସେହି କାରାଗାରେ ଜନ୍ମ, ସେଇଠି ନିଧନ |୩୨

ଜୀବନରେ ପଦେ ପଦେ ଲେଶ ଭୋଗି ଭୋଗି
ସୁଖ ଆଶେ ଭାଳେ ନା ସେ - ମୁହିଁ ଏକ ରୋଗୀ ।୩୩
ଘାତ ପ୍ରତିଘାତେ ଦେହ- ମନ ଜର୍ଜରିତ
ହେଲେ ହେଁ ସେ କାରାଗୃହେ ଥାଏ ସମ୍ମୋହିତ ।୩୪
ଚାହେଁ ଭଗ୍ନ କାରା ଘର ଧରି ରଖିବାକୁ,
ବୟୋବୃଦ୍ଧ ବନ୍ଦୀ ହେଇ ବଞ୍ଚି ରହିବାକୁ ।୩୫
ସ୍ମାର୍ଟ୍ ଆତ୍ମା ଜନ୍ମିବାକୁ ବଡ ହାଇଁ ପାଇଁ,
କୀଳା ନ ଘେନିଲେ ତାକୁ ଭଲ ଲାଗେ ନାହିଁ ।୩୬
ମଲା ମାତ୍ରେ ଖୋଜି ବୁଲେ ଜନନୀ ଜଠର
ଜାଣୁ ଜାଣୁ ଜୀବନଟା କଷଣ ମାତର । ୩୭
ମାତୃଗର୍ଭେ ଅନ୍ଧକାରେ ବଢିବା କଷଣ,
ତହୁଁ ଶତଗୁଣ ବଳି ଦୁଃସହ ମରଣ । ୩୮
ଜୀବନରେ ଛତ୍ରେ ଛତ୍ରେ ବୃତ୍ତିରେ ବିପତ୍ତି,
ସଭିଏଁ ପେଲିବେ ଦୋଷ, ଫାଙ୍କିବେ ନିଷ୍ପତ୍ତି । ୩୯
ସର୍ବେ ଅଧିକାରଚେତା, କର୍ମନିଶ୍ଚେତନ,
ଫ୍ରେଞ୍ଚ୍ ଲିଭ୍ ପୁଳେ କିନ୍ତୁ ଅକ୍ଷୁଣ୍ଣ ବେତନ । ୪୦
ସେହି ପରି ମନୋଭାବ ମୁଖ୍ୟତଃ ସଂସାରେ,
କର୍ତ୍ତବ୍ୟ ବିସର୍ଜି ସର୍ବେ ବ୍ୟସ୍ତ ଅଧିକାରେ । ୪୧
ବିଶେଷେ ଭାରତବର୍ଷେ ଆଳସ୍ୟେ ନିର୍ଦ୍ଧନ;
"କର୍ମେ ଥିଲା," କହି କର୍ମ କରନ୍ତି ବର୍ଜନ । ୪୨
ଭୋଗି ଦୈନ୍ୟ ପ୍ରହରଣ, ନିର୍ଘାତ କଷଣ,
କହନ୍ତି ଏ ଈଶ୍ୱରଙ୍କ କୃପା ବରଷଣ; ୪୩
ଈଶ୍ୱର ମୋହର, ଯେଣୁ ମୁଁ ଗୋଟେ ନିର୍ଦ୍ଧନ;
ଅଭ୍ୟନ୍ତରେ ଥିବେ କିନ୍ତୁ ସର୍ବଦା ବିଷଣ୍ଣ । ୪୪
ମାଡୁଆ ଛୁଆ ଯେସନ ମାଡ ଖାଇ ଖାଇ
କହୁଥାଏ, "ବାଡଉ ଥା, ଜମ୍ମା କାଟୁ ନାହିଁ ।" (୪୪କ)

ଲଲାଟେନ୍ଦୁ କବି ୨୦୧୯୧୧୨୫୨୧୦୦

ସ୍ମାର୍ଟ୍ ଆତ୍ମା

## ଅଧ୍ୟାୟ—୭: ଆତ୍ମା ଆସିଲା କେଉଁଠୁ

ପଚାରନ୍ତେ ଆତ୍ମା ଏତେ କୁଆଡୁ ଆସିଲା,
ବୁଝାଇଲା ଜଣେ ମୋତେ ବଗୁଲିଆ ପିଲା - ୪୫
ଜଳୁଥିଲା ଏ ବସୁଧା ଆକାଶ ବକ୍ଷରେ,
ବିନା ଘାସ ଗଛ ବୁଦା ଆପଣା କକ୍ଷରେ, ୪୬
ଧୀରେ ଧୀରେ ଧରାବକ୍ଷ ହେବାରେ ଶୀତଳ,
ଆସି ଗଲେ ଝାଡି ପକ୍ଷ ଆତ୍ମା ଦଳ ଦଳ । ୪୭
ଗ୍ରୀଷ୍ମ କାଳେ ହେଇଗଲେ ଅଳ୍ପ ବରଷଣ,
ଡେଣା ଲାଗି ଝଡି ପୋକ ଉଡନ୍ତି ଯେସନ । ୪୮
ଜୀବନଧାରଣ ଲାଗି ଦେଖି ସମ୍ଭାବନା,
ଆତ୍ମାଙ୍କ ଉଠିଲା ଜାଗି ଜନ୍ମିବା ଭାବନା । ୪୯

କିଏ ଥିଲେ ଦୂର କାହିଁ      ଗ୍ରହ ଗ୍ରହାନ୍ତରେ,
ଘୁରୁଥିଲେ ପ୍ରେତ ହୋଇ      ସେଠି ଦେହାନ୍ତରେ, ୫୦
ଧ୍ୱଂସ କରି ଜଳବାୟୁ,      ଦୈବ ସଂସାଧନ,
ସେଠା ଛାଡି ଏହିଠାକୁ      କଲେ ଆଗମନ । ୫୧
କିଏ ଆତତାୟୀ କିଏ      ଅପକର୍ମେ ଦାୟୀ,
ଆସି ଭାଗ୍ୟ ଅନୁଯାୟୀ      ବନି ଗଲେ ସ୍ଥାୟୀ ।୫୨
ଏହି ପରି ଦେଖି ଦେଖି      ବାସ ଉପଯୋଗୀ,
ସ୍ମାର୍ଟ ଆତ୍ମା ଗ୍ରହାନ୍ତର      ଚାଲିଥାଏ ଭୋଗି ।୫୩
ବିଜ୍ଞାନ ଭାଷାରେ ସେହି      ଆଦିମ ଜୀବନ,
କରେ ଭୂତାକାଶ ଦେଇ      ଗମନାଗମନ । ୫୪
ତିମି ପାଶେ ଯେଉଁ ଆତ୍ମା      କ୍ରିମି ପାଶେ ସେହି,
ଭୂତାଣୁଠୁ ମହାଦ୍ରୁମେ      ସଚେତନ ଦେହୀ ।୫୫
ଲଲାଟେନ୍ଦୁ କବି ୨୦୧୯୧୨୨୮୧୪୩୫

ସ୍ମାର୍ଟ ଆତ୍ମା

## ଅଧ୍ୟାୟ-୮: ଆତ୍ମାର ପରଜନ୍ମ କେଉଁଠି ହୁଏ

ମଲା ପରେ ଆତ୍ମା କରେ      କେଉଁଗର୍ଭେ ଗତି
ବୁଝାଇ ଦେଇଛି ସେଇ      ଅତି-ଅଳ୍ପମତି । ୫୬
ମଲା ବେଳେ ଯେ ଭାବନା      ଥାଏ ଯା' ମନରେ,
ସେ ଭାବେ ସେ ଲଭେ ଜନ୍ମ      ନବ କଳେବରେ । ୫୭
ନିଦ୍ରା ଯିବା ବେଳେ ଯଥା      ଥାଏ ଯେ ଭାବନା
ସୁମରିବା ଉଠିଲେ ତା’      ବେଶି ସମ୍ଭାବନା । ୫୭
ସେହି ସ୍ଥାନେ ମନେ ମନେ      କରିବ ବିହାର,
ନିଦ୍ରା ବେଳେ ଅଧା ଯହିଁ      ଥିଲା ତା’ ବିଚାର । ୫୮
ଅପୂର୍ଣ୍ଣ ଥିବାରୁ ତାର      ମନର ଭାବନା
ସେହିଠାରେ ପୁନର୍ଜନ୍ମ      ପୂର୍ଣ୍ଣ ସମ୍ଭାବନା । ୫୯
ମଲା ବେଳେ ଭାବୁଥିଲେ      ପାଠ ପଢା କଥା
ଜନମିବ ଯେଉଁ ସ୍ଥାନେ      ଅଧିକ ବିଦ୍ୱତା । ୬୦
ଗଲେ ଟଳି ଭାଳି ଭାଳି      ଚୋରି ଜିନିଷକୁ
ଚୋର ଘରେ ଜନମିବ      ଆଗାମୀ ଥରକୁ । ୬୧
ମରିଥିଲେ ଭାବି ଭାବି      ପୁଅ ଝିଅ କଥା
ତାଙ୍କ ପାଶେ ଜନମିବା      ବିଧିର ବ୍ୟବସ୍ଥା । ୬୨
ମଲା ବେଳେ ମଜିଥିଲେ      ଶ୍ରୀହରି ସ୍ମରଣେ
ଆତ୍ମା ଚାଲି ଯିବ ସିଧା      ପ୍ରଭୁଙ୍କ ଶରଣେ । ୬୩
ମୁକ୍ତି ପାଇଁ ଥିବ ଯା’ର      ସେ ବେଳେ ଆଗ୍ରହ
ତାର ହେବ ମୁକ୍ତି ଲାଭ      ତେଜିଲେ ବିଗ୍ରହ । ୬୪
ଚିନ୍ତା ଥିଲେ ଗୋରୁ ଗାଈ      ବଳଦ ଘୁଷୁରି
ସେହି ଗର୍ଭେ ଜନ୍ମି ତାର      ଆଶା ଯିବ ପୂରି । ୬୫
ପୋଷିଲା କୁକୁର କଥା      ଭାବୁ ଥିବ ଯିଏ
କୁକୁରଟେ ହେଇ ନିଶ୍ଚେ      ଜନମିବ ସିଏ । ୬୬
କୀଟ କଥା ଭାଳି ମଲେ      କୀଟଜନ୍ମ ପ୍ରାପ୍ତି,
ଉଡିବାକୁ ଭାବି ମଲେ      ହେବ ପକ୍ଷୀଜାତି । ୬୭

ମଲା ବେଳେ ସତ୍ପୁରୁଷେ ଦେଇଥିଲେ ମତି
ସଦାଚାରୀ ଘରେ ହେବ ତାହାର ଉତ୍ପତ୍ତି । ୬୮
ଏହି ପରି ଯାହାର ଯା' ଅନ୍ତିମ ମନନ
ସେ ସ୍ଥାନରେ ଜନ୍ମାନ୍ତରେ ସେ କରେ ଗମନ ।୬୯
ଏହି ଭାବେ ଆତ୍ମା ଲଭେ ସଦ୍ଗତି ଦୁର୍ଗତି
ଏ ନିୟମ ଗଢିଛନ୍ତି ବ୍ରହ୍ମାଣ୍ଡର ପତି । ୭୦
ପଚାରିଲି - ଖୁଣ୍ଟ କଥା ଭାବି ଯେ ମରିବ
ସେ କି ତେବେ ଖୁଣ୍ଟ ଭାବେ ଜନମ ଲଭିବ ? ୭୧
କେତେ ତୁ ଭୁତାଉଅଛୁ ବଗୁଲିଆ ଟୋକା,
ମୋତେ କି ତୁ ପାଇଅଛୁ ମସ୍ତ ବଡ ବୋକା ?୭୨
ଶଙ୍କା ଯେବେ ମୋ ମନରୁ ନ କରିବୁ ଦୂର,
ଜାଣି ତୋତେ ଭଣ୍ଡଗୁରୁ ଚଳିବି ମୋ ପୁର ।୭୩
ସେ ପୁଣି କହୁଛି ମୋତେ - ଏଇ ଗୋଟେ କଥା?
ମନ ଦେଇ ଶୁଣ, କର ନାହିଁ ମୁଣ୍ଡବ୍ୟଥା । ୭୪
ବୁଝାଇ ନ ଦେଲେ ସବୁ ହେବ ମୋ ଅନ୍ୟାୟ,
ନର ହିତେ କର ତାକୁ ଅପର ଅଧ୍ୟାୟ । ୭୫
ଲଳାଟେନ୍ଦୁ କବି ୨୦୧୯୧୨୨୯-୨୨:୧୯

ସ୍ମାର୍ଟ୍ ଆତ୍ମା
## ଅଧ୍ୟାୟ-୯: ନିର୍ଜୀବକୁ ଭାବି ମଲେ କି ଗତି?

"ଖୁଣ୍ଟକୁ ସୁମରି ଯିଏ ଦେହ ବରଜିବ,
ସେ କି ଖୁଣ୍ଟ ହେଇ ପୁଣି ଜନମ ଲଭିବ?" ୭୬
ଶୁଣି ଜାଣିଲି କି ମୂର୍ଖ ଥିଲି ମୁଁ ସତରେ,
ସେ ପୁଅ ବୁଝାଇବାରେ ଏ ପ୍ରଶ୍ନ ଉତ୍ତରେ - ୭୭
ଖୁଣ୍ଟ ଏକ ପ୍ରାଣୀ ନୁହଁ ଜନ୍ମାଇବ ଛୁଆ,
କିନ୍ତୁ ଭାଳି ମଲେ ତାକୁ ସେହିଗତି ଥୁଆ ।୭୮
ଖୁଣ୍ଟ ଜନ୍ମ ନାହିଁ କିଛି, ଜନ୍ମିବ ତା ପାଖେ,
ସେ ଖୁଣ୍ଟକୁ ଜଗି ଥିବ ବହୁଦିନ ଯାକେ ।୭୯
ହେଉ ନର ଦେହେ ଅବା ଆନ କଳେବରେ
ଝୁରି ତାକୁ ଘୁରୁଥିବ ତା ଚାରିପାଖରେ ।୮୦
ଭାବି ଭାବି ମଲେ ତୁମ ବାସଗୃହ କଥା,
ପରଜନ୍ମେ ସେ ଭବନେ ହେବ ଆତ୍ମୀୟତା । ୮୧
କୀଟ, ଶ୍ୱାନ, ଛେଳି ହୁଅ, ନର, ଗୋରୁ, ଗାଈ,
ସେହି ଘର ପାଖା ପାଖି ଚରୁଥିବ ଯାଇ ।୮୨
ଏ ଭାବେ ଜନମ ମିଳେ ଭାବ ଅନୁଯାୟୀ,
ହୁଅ ପକ୍ଷୀ ସରୀସୃପ ଅବା ସ୍ତନ୍ୟପାୟୀ ।୮୩
ଏ ସବୁ ଶାସ୍ତ୍ରବଚନ ମନେ ରଖିଥିବ,
ପର ଜନ୍ମ ପାଇଁ ବଡ ସଂଯତେ ଚଳିବ।୮୪
ହୀନ ଚିନ୍ତା କଲେ ଯିବ ନିଜ ସ୍ୱାଧୀନତା,
ମନ୍ଦ ଭାବନରୁ ହେବ ଭୀଷଣ ହୀନସ୍ତା।୮୫
ଜାଣି ରଖ ନର୍କ ମଧ୍ଧ ଭାବକୁ ନିକଟ:
ଇତର ଭାବରୁ ସିଧା ନର୍କକୁ ଟିକଟ । ୮୬
ଲଳାଟେନ୍ଦୁ କବି ୨୦୧୯୧୨୩୧୦୩୩୭

ସ୍ମାର୍ଟ୍ ଆତ୍ମା
ଅଧ୍ୟାୟ- ୧୦: ନର୍କଗତି ଓ ସେଥିରୁ କ୍ଳେଶ

ଲାଗିଲା ତା କଥା ଶୁଣି ବଡ ଅସହାୟ
ପଚାରିଲି ଦୁର୍ଗତିରୁ ବର୍ତ୍ତିବା ଉପାୟ | ୮୭
ଛତ୍ରେ ଛତ୍ରେ ଦେଖୁଥିଲି ଏପରି ବିପଦ:-
ଆଗାମୀ ଜନମେ ହେବି କୁକୁର କି ଗଧ, ୮୮
ଛେଳି ହେଇ ଜନମିଲେ କାଟିବ ପଠାଣ,
ତନ୍ତ ବୁଣି ପ୍ରାଣ ଯିବ ହେବି ଯେବେ ପାଣ ୮୯
ପର ଜୋତା ସିଉଁଥିବି ହେବି ଯେବେ ମୋଚି,
ମେହେନ୍ତର ହେଲେ ଯିବି ମଳମୂତ୍ର ପୋଛି, ୯୦
ପୁଲିସି ପିଟିବ ଧରି ହେବି ଯେବେ ଚୋର
ସକଳେ ନିନ୍ଦିବେ ହେଲେ ଟଙ୍କାଖିଆ ଘୋର | ୯୧
ଏମନ୍ତ ନର୍କର ଭୟ ହୁଅନ୍ତେ ସଞ୍ଚାର
ପଚାରିଲି ଅର୍ବାଚୀନେ ଏହା ଉପଚାର |୯୨
ସ୍ୱର୍ଗ ଯେ ନ ଯିବ ନାହିଁ, ନ ଯାଉ ନରକ,
ଇତର ଜନ୍ମ ତ ନର୍କ, କି ଆଉ ଫରକ ?୯୩
କି ଭାବେ କରିଲେ କର୍ମ କାହିଁ ଦେଲେ ମନ
ନ ହେବ ଇତର ପ୍ରାଣୀ ଗରଭେ ଗମନ ?୯୪

ସ୍ମାର୍ଟ୍ ଆତ୍ମା
ଅଧ୍ୟାୟ- ୧୧: ନର୍କଗତିରୁ ବର୍ତ୍ତିବା ଉପାୟ

ମନ ସଦା ରଖିଥିବ ପ୍ରଭୁଙ୍କର ପାଶେ,
ମନେ ଯଥା ପଡିବ ତା ଅନ୍ତିମ ନିଃଶ୍ୱାସେ | ୯୭
ସେହି ଭାବେ ମରି ଗଲେ ଈଶ୍ୱର ପ୍ରାପତି,
ମହତ ଚିନ୍ତାରୁ ହେବ ନାହିଁ ନିମ୍ନଗତି | ୯୮
ସେଥି ପାଇଁ ମନେ ସଦା ହରିଙ୍କ ସ୍ମରଣ
କରୁଥିବା ପ୍ରୟୋଜନ ନରନାରୀଗଣ | ୯୯
ପାରିଲେ ସନ୍ତାନେ କରି ସେ ନାମକରଣ,
ତାଙ୍କୁ ଡାକି କରୁଥିବ ହରିଙ୍କ ସ୍ମରଣ |୧୦୦
ନାମିବ ବାସଭବନ ପ୍ରଭୁଙ୍କର ନାମେ,
ହରିନାମ ସ୍ମରୁଥିବ ଗୋଟିଗୋଟି କାମେ ୧୦୧
କାର୍ଯ୍ୟାରମ୍ଭେ ସୁମରିବ କାର୍ଯ୍ୟଶେଷେ ପୁଣି,
ଏଭାବେ ରଖିବ ଚୋଳି ସ୍ୱର୍ଗକୁ ନିଶୁଣି |୧୦୨
ଦୋକାନ କି ବ୍ୟବସାୟ ଯେ ଯାହା କରିବ
ସହସ୍ରନାମରୁ ଦେଇ ରେଜିଷ୍ଟ୍ରୀ କରିବ |୧୦୩
ଏହି ସବୁ କରୁଥିଲେ ଥାଇ ଜୀବନରେ
ମନକୁ ଆସିବ ତାହା ଶେଷ ଶୟନରେ|୧୦୪
ହରି କଥା ସ୍ମରିବାରେ ନ ହେଲେ ଅଭ୍ୟାସ
ସ୍ମରିବ ସପୁରୁଷେ ଯେ ଥିବେ ଆଶ ପାଶ|୧୦୫
କେଉଁ ମହାପୁରୁଷଙ୍କ ଜାଣି ଉଦାରତା,
ଭାଳି ହେଉଥିବ ସଦା ତାଙ୍କ ମହାନତା |୧୦୬
ମଲା ବେଳେ ସ୍ମରି ସେହି ବିଶାଳାତ୍ମା କଥା
ସାଧୁ ଘରେ କର ପର- ଜନ୍ମର ବ୍ୟବସ୍ଥା | ୧୦୭

ତା ନ ହେଲେ ଅହରହ କରି ମୁକ୍ତି ଚିନ୍ତା
ଗର୍ଦ୍ଦନରୁ ଛିଣ୍ଡାଇବ ପୁନର୍ଜନ୍ମ ଫିତା |୧୦୮
ଅହରହ ହେବା ପାଇଁ କାହିଁ ଏକମନା,
ଲୋଡା ନାହିଁ କିଛି ବୋଲି କଠୋର ସାଧନା|୧୦୯
ତୁମ ପୁଅ ଅବା ଝିଅ ଥିଲେ ଛାତ୍ରାବାସେ
ଜାଣିନ କି ତାଙ୍କ କଥା ସଦା ମନେ ଆସେ !
ସିନେମା ଟିକଟ ପାଇଁ ଥିଲେ ଲାଇନିରେ
ଦୃଷ୍ଟି ଥାଏ କିଏ ଗଲା ପଶି ସେ ଧାଡିରେ ୧୧୧
ରାତି ସାରା ଯନ୍ତ୍ରଯାନ ଚଳାଇଛ ତୁମେ,
କିପରି ରଖୁଛ ଧ୍ୟାନ ଖାଲ ଢିପ ଭୂମେ?୧୧୨
କେବେ ହେଁ ମନୋନିବେଶ ଲୋଡେନା ସାଧନା,
ଲୋଡା ମାତ୍ର ଇଷ୍ଟ ପାଇଁ ଅଦମ୍ୟ କାମନା |୧୧୩
ମନ ମଧ୍ୟେ ପ୍ରେମ ଥିଲେ ସଦ୍ଗତି ସକାଶେ
କିଛି ବିଘ୍ନ ନାହିଁ ଜଳେ ସ୍ଥଳେ ଭୂତାକାଶେ,
କରି ନିଅ ଦୃଢ ଭାବେ ସଦ୍ଗତି ନିଶ୍ଚୟ,
ଦେବତା ପିତର ଋଷି ରହିବେ ସଦୟ |୧୧୫
ମନ ଦେଇ ସଦା ଏହି ଭବ ଛଳ-ବଳେ,
ନିଜେ କୀଳା ଡାକି ନର ହୀନ ଗର୍ଭେ ଚଳେ |
ନିଜ ନୀଚ ଜନ୍ମ ପାଇଁ ଦାୟୀ ନିଜେ ନର,
କି କରିବେ ଦେବ ଋଷି ଈଶ୍ୱର ପିତର ?୧୧୭
ଲଳାଟେନ୍ଦୁ କବି ୨୦୨୦୦୧୦୪୧୨୧୯

ସ୍ମାର୍ଟ୍ ଆତ୍ମା
ଅଧ୍ୟାୟ- ୧୨: ପ୍ରଳୟକାଳରେ ଆତ୍ମାର ସ୍ଥିତି

ମୋ ମନେ ଜାଗିଲା ଏବେ ନୂତନ ସଂଶୟ,
କହିଲି ଦିଅ ମୋ ଭାଇ ଟିକିଏ ସମୟ |୧୧୮
ବୁଝାଇ କହିବ ମୋତେ ଅନ୍ୟ ଗୋଟେ କଥା:
ପ୍ରଳୟେ କି ଅଛି ଫଳ- ଭୋଗର ବ୍ୟବସ୍ଥା ?
ନଥିବାରୁ ସ୍ୱର୍ଗ ନର୍କ ଚନ୍ଦ୍ର ଆଦି ଲୋକ
ପ୍ରଳୟେ କି ଆତ୍ମା କରେ ନିକାଞ୍ଚନେ ଶୋକ ?
ଶୋକ ଭୋଗିବାକୁ ମଧ୍ୟ ନଥିବ ସଂସାର,
ଆତ୍ମା ଏକା କରୁଥିବ ତୁଚ୍ଛା ହାହାକାର |୧୨୧
ଭଲମନ୍ଦ କର୍ମ କରି ପୂର୍ବ ଜନମରେ,
କି ଭାବେ ଭୋଗିବ ଫଳ ଏବେ ଘଟାନ୍ତରେ ?
ଅବା ଦେହ ପାଇବାକୁ କରିବ ପ୍ରତୀକ୍ଷା?
ସେ ତ ହେବ ତାହା ପାଇଁ ବିଷମ ପରୀକ୍ଷା !୧୨୩
ଯଦି ବା ପ୍ରତୀକ୍ଷା କରେ, ଥାଏ କେଉଁଠାରେ,
ଜନ୍ମିବାକୁ କଳ୍ପାନ୍ତରେ ପୁଣି ଏ ସଂସାରେ ?
"ଏହି ପ୍ରଶ୍ନ ଉଠାଇବା ଅତି ସମୀଚୀନ,
ଶୁଣ ତା ଉତ୍ତର," ମୋତେ କହେ ଅର୍ବାଚୀନ |୧୨୫
ଭୂତାକାଶ ବାୟୁ ଅଗ୍ନି ଜଳ ସ୍ଥଳ ସର୍ବେ
ପ୍ରଳୟେ ବିଲୁପ୍ତ ମୂଳ ପ୍ରକୃତିର ଗର୍ଭେ |୧୨୬

ନ ଥାଏ ସଂସାର, ଲୋକ, ଭୋଗିବାକୁ ଫଳ,
ଚେତନ ରହିଲେ ଆତ୍ମା ଜଞ୍ଜାଳ କେବଳ ।୧୨୭
ପ୍ରଳୟର କାଳେ ତେଣୁ ବ୍ରହ୍ମାଣ୍ଡ କରତା,
ଦିଅନ୍ତି ଆତ୍ମା ସକଳେ ମୂର୍ଚ୍ଛିତ ଅବସ୍ଥା । ୧୨୮
ମୂର୍ଚ୍ଛିତ ଆତ୍ମାଙ୍କୁ ଧରି ପ୍ରଳୟ କଲ୍ଲୋଳେ,
ଯତନେ ରଖନ୍ତି ପ୍ରଭୁ ତାଙ୍କ ନିଜ କୋଳେ ।୧୨୯
ଗୁଣତ୍ରୟ, ମନୋବୁଦ୍ଧି, ତନ୍ମାତ୍ର ସରବେ
ଅପ୍ରକଟ ରହିବାରୁ ପ୍ରକୃତି ଗରଭେ ।୧୩୦
ଆତ୍ମା ଥାଏ ଚିନ୍ତାଶକ୍ତି ବିବେକ ହରାଇ
ଏହି କଥା ଜାଣିଛନ୍ତି ବ୍ରହ୍ମାଣ୍ଡର ସାଇଁ । ୧୩୧
ସ୍ମାର୍ଟ୍ ଆତ୍ମା ସ୍ମାର୍ଟ୍‌ପଣ ହରାଏ ପ୍ରଳୟେ,
ଶ୍ରୀହରି ରଖନ୍ତି ତାକୁ ଆପଣା ଆଶ୍ରୟେ ।
ଧୀରେ ବସୁନ୍ଧରା ହେଲେ, ବାସ ଉପଯୋଗୀ,
ସ୍ମାର୍ଟ୍ ଆତ୍ମା ମୂର୍ଚ୍ଛା ତେଜି ଉଠେ ଫଳ ଭୋଗି ।
ଯେ ଦେହେ ଲଭନ୍ତେ ଜନ୍ମ ପ୍ରଳୟ ନଥିଲେ,
ସେହି ଦେହେ ଜନମନ୍ତି ପ୍ରଭୁଙ୍କ ଏ ପିଲେ ।
ଲଲାଟେନ୍ଦୁ କବି ୨୦୨୦୦୧୦୫୦୯୪୭

ସ୍ମାର୍ଟ୍ ଆତ୍ମା
ଅଧ୍ୟାୟ- ୧୩: ଏ ପର୍ଯ୍ୟନ୍ତ ପଠିତ ଆତ୍ମବିଦ୍ୟାର ସାରମର୍ମ

ଆତ୍ମାକୁ କହନ୍ତି ସିନା ସଦା ସୁନିର୍ମଳ
ତାହା ପରି ବୋକା ଏହି ଜଗତେ ବିରଳ ।୧୩୫
କଳେବର ବରି ବୀର ବିରାଟ ସଂସାରେ
ଦେହୀ ହୁଏ ଦହଗଞ୍ଜ ଦେହ କାରାଗାରେ ।୧
ସଂସାରେ ସର୍ବ କଷଣ ସଦ୍ୟ ଦେଖି ଚାହିଁ
ଜନ୍ମିବାକୁ ଭଲ ଗର୍ଭ ବାଛି ପାରେ ନାହିଁ ।
ନର ଜନ୍ମେ ନିରନ୍ତର ନ କରି ସାଧନ
ଜନ୍ମାନ୍ତରେ ନାନା ନର୍କେ ଭୋଗେ ନିର୍ବାସନ ।
ଭାବେ ନା ସେ - ମୁଁ ଏ ବିଶ୍ୱେ କ୍ଷୁଦ୍ର ପିପୀଲିକା,
ନିରାଧାରେ ଅହଂକାରେ ରଚେ ବିଭୀଷିକା।୧୩୯
ଯେଉଁ ବୀରପଣେ ନାହିଁ ନିଜର ସଦ୍ଗତି
ତାଦୃଶ ଇତର ତର୍କେ ବଳାଏ ପ୍ରବୃତ୍ତି ।୧୪୦
ହତବୁଦ୍ଧି ଜିହ୍ୱା ଛେଦି ଆପଣା ହସ୍ତରେ
ଭୂରୀ ଭୂରୀ ଘୂରି ମରେ କଳ୍ପ କଳ୍ପାନ୍ତରେ ।୧୪୧
ଏ ନର୍କବାସରୁ ଅଛି ବଞ୍ଚିବାର ବାଟ,
ହେବ ତ୍ରାହି ପଢ ଏହି ସ୍ମାର୍ଟ୍ ଆତ୍ମା ପାଠ।୧୪୨
ଲଲାଟେନ୍ଦୁ କବି ୨୦୨୦-୦୧-୧୨-୧୦:୪୯

ସ୍ମାର୍ଟ୍ ଆତ୍ମା
ଅଧ୍ୟାୟ- ୧୪: ପାପପୁଣ୍ୟ ଏଡ୍‌ଜାଷ୍ଟମେଣ୍ଟ୍, ନେଟ୍‌ବେଲେନ୍ସ୍

ମୋ ମନେ ଜାଗିଲା ପୁଣି ନୂତନ ସଂଶୟ,
ବୁଝାଇ କହିବା ଲାଗି କଲି ଅନୁନୟ :୧୪୩
ଜାଣି ଅବା ଅଜାଣତେ ହେଇ ଗଲେ ପାପ,
କିପରି ଜାଣିବ ସେହି ପାତକର ମାପ ? ୧୪୪
ଜାଣି ଗଲେ ତହୁଁ ବେଶି ପୁଣ୍ୟ କର୍ମ କରି,
ନିଶ୍ଚୟ ମୁଁ ଯିବି ପାପ- ଫଳରୁ ନିଃସରି |୧୪୫
ପାପଠାରୁ ପୁଣ୍ୟ ଯେତେ ହେବ ମୋ ବଳକା,
ତାହା ଫଳେ ସ୍ୱର୍ଗସୁଖ ଭାଗ୍ୟେ ଥିବ ରଖା |
ବଳକା ପୁଣ୍ୟର ମଧ୍ୟେ ଅଳ୍ପ ପାପ ପୁଣି,
କଲେ ମଧ ଚଢିବି ତ ସ୍ୱର୍ଗକୁ ନିଶୁଣି |୧୪୭
ଏହି ପ୍ରଶ୍ନେ ରାଗି ମୋତେ କହେ ଅପାଠୁଆ,
ଯେତେ ଚତୁରତା କର, କର୍ମଫଳ ଥୁଆ | ୧୪୮
ପାପ ପୁଣ୍ୟ କେବେ ହେଲେ ଏଡ୍‌ଜାଷ୍ଟମେଣ୍ଟ୍ ହୁଏନା;
ଉଭୟର ଫଳ ସର୍ବେ କରିଥାନ୍ତି ଘେନା ୧୪୯
ପୁଣ୍ୟ ପାଇଁ ପୁରସ୍କାର, ପାପ ପାଇଁ ଦଣ୍ଡ,
ଘେନିବେ ସକଳେ ବିଦୁ- ଷଠୁ ଅପୋଗଣ୍ଡ | ୧୫୦
ଭିନ୍ନ ଭିନ୍ନ ଅଦାଲତେ ଭିନ୍ନ ବିଚାରକ,
ଭିନ୍ନ ଭିନ୍ନ କେଶ୍ ଯଥା କରନ୍ତି ପରଖ | ୧୫୧
ସବୁଥିର ରାୟ ଯାଏb ଯମର ଦପ୍ତରେ,
କାର୍ଯ୍ୟାକାରୀ କରିବାକୁ ମରଣର ପରେ | ୧୫୨
ଯମ ପାଶେ ସେଥି ଲାଗି ଅଗଣିତ ଦୂତ,
ନର ମୃତ୍ୟୁ ସମୟକୁ ସଭିଏଁ ପ୍ରସ୍ତୁତ | ୧୫୩
ହାତେ ଥାଏ ଠେଙ୍ଗା ଆଦି ଦଣ୍ଡ ସଂସାଧନ,
ମଲା ମାତ୍ରେ କରନ୍ତି ସେ କର୍ମ ସମ୍ପାଦନ | ୧୫୪
ଗୋଟି ଗୋଟି ପାପ ଫଳ ମିଳିଗଲା ପରେ,
ଗୋଟି ଗୋଟି ପୁଣ୍ୟ ଫଳ ଦିଅନ୍ତି କ୍ରମରେ |୧୫୫
ଏହି ପରି ସରିଗଲେ ପାପପୁଣ୍ୟ ଫଳ,
ଧରାପୃଷ୍ଠେ ଜନ୍ମି ଆତ୍ମା ହୁଏ ଚଳାଚଳ | ୧୫୬
ପାପ ପୁଣ୍ୟ ଏଡ୍‌ଜାଷ୍ଟମେଣ୍ଟ୍ କିଛି ବୋଲି ନାହିଁ,
ବହୁକାଳ ଲାଗେ ସବୁ ଭୋଗ ହେବା ପାଇଁ |
ମୁକ୍ତ ନୁହଁ ଯେଉଁ ଆତ୍ମ ଫଳଭୋଗ ପରେ,
ପୁଣି ଆସି ଜନ୍ମ ନିଏ ନବ କଳେବରେ |୧୫୮
ପୁଣ୍ୟ ଫଳେ ହୁଏ ନାହିଁ ପାପ ଫଳ ଲୟ,
ଏହି ମାତ୍ର ସଂକ୍ଷେପରେ ବୁଝିବା ବିଷୟ |୧୫୯
କର ନାହିଁ ଛୋଟ ମୋଟ ଗୋଟେ ଅଧେ ପାପ,
ମଲା ପରେ ଭୋଗିବାକୁ ନ ହେଉ ସନ୍ତାପ |୧୬୦

ସ୍ମାର୍ଟ୍ ଆତ୍ମା

## ଅଧ୍ୟାୟ- ୧୫: ଜନସଂଖ୍ୟା ବଢୁଛି କିପରି?

ପ୍ରେତ ଯେବେ ଆସେ ନବ    କଳେବର ଧରି,
ଆଶ୍ଚର୍ଯ୍ୟ ଏ, ଜନସଂଖ୍ୟା    ବଢୁଛି କିପରି !୧୬୧
ଏହି ପ୍ରଶ୍ନେ ବୁଝାଇଲା    ସେହି ବଗୁଲିଆ,
କୁହ ଦେଖି ପଶୁ ସଂଖ୍ୟା    କମୁଅଛି କିଆଁ ? ୧୬୨
ନର ଯେତେ ବାଘ ସିଂହ    କରୁଛି ବିନାଶ,
ନର ଦେହେ ତୋଳୁଛନ୍ତି    ନବୀନ ନିବାସ |୧୬୩
ମଲାବେଳେ ଭାବି ନର    ହତ୍ୟାକାରୀ କଥା,
ନରଜନ୍ମ ନେବାଟା ତ    ବିଧିର ବ୍ୟବସ୍ଥା | ୧୬୪
ଜନ୍ମ ହୁଏ ମୃତ୍ୟୁକାଳ    ଚିନ୍ତା ଅନୁଯାୟୀ,
ଜନ୍ମ ଜନ୍ମ ସଂସ୍କାର ତ    ଛାଡି ଯାଏ ନାହିଁ, ୧୬୫
ସେ ପୂର୍ବ ସଂସ୍କାର ହେତୁ    ହିଂସ୍ର ବହୁ ନର,
ନିଘଞ୍ଚ ଅରଣ୍ୟ ଦିନେ    ଥିଲା ଯାହା ଘର |
ହରିଣ କୁଟୁରା ଛେଳି    ଶୂଳିକାଦି ପ୍ରାଣୀ-
ଆତ୍ମା ନର ଦେହେ ଆସି    ଘର କରିଲାଣି | ୧୬୭
ପ୍ରେତ ରୂପେ ଥିଲେ ଯେଉଁ    ଆତ୍ମା କୋଟି କୋଟି,
ସେମାନେ ବି ନେଉଛନ୍ତି    ଜନ୍ମ ଗୋଟି ଗୋଟି |
ବିଜ୍ଞାନ ବଳରେ ଦେଖି    ନାନାଦି ସୁବିଧା
ବେଗେ ନେଉଛନ୍ତି ଜନ୍ମ    ନାହିଁ ଆଉ ଦ୍ୱିଧା |୧୬୯
ରାଜା ଥିଲା ଚାଳ ଘରେ    ସତ୍ୟ ତ୍ରେତା ଯୁଗେ,
ପେଟ ପୋଶୁଥିଲା ନର    ଅନ୍ନବିରିମୁଗେ | ୧୭୦
କଳି ଯୁଗେ ପକ୍କାଘରେ    ରହେ ଚପରାସି
ବନ୍ୟା ଜଳେ ଘର ତାର    ଯାଏ ନାହିଁ ଭାସି |
ଫିଜା ନୁଡ୍‌ଲ୍ସ୍  କେମିକେଲ୍    ଖାଦ୍ୟ ଖାଇ ଖାଇ,
ଚଳୁଅଛି ଅଧେ ଦିନ    ନ କଲେ ରୋଷାଇ |
ଆଗେ ଥିଲା ଦିଆ ନିଆ    ଚାଉଳ ସୋରିଷ,
ମଣିଷ ଜାଣି ନ ଥିଲା    ଟଙ୍କା କି ଜିନିଷ |୧୭୩
ବସ୍ତୁ ଦେଇ ବସ୍ତୁ ଆଣି    ମୁଣ୍ଡାଇ ମୁଣ୍ଡାଇ,
ପାଦଚମ ଛିଣ୍ଡୁଥିଲା    କୁଣ୍ଡାଇ କୁଣ୍ଡାଇ | ୧୭୪
ଏବେ ସବୁ ମିଳିଲାଣି    ଟାଙ୍କା ବଦଳରେ,
ବୋହିବାର ନାହିଁ କିଛି    ଜନଗହଳରେ | ୧୭୫
ଅର୍ଡର କଲେ ମିଳୁଅଛି    ଡୋର୍ ଡେଲିଭେରୀ,
ଶୂନ୍ୟରେ ଉଡୁଛି ବାର୍ତ୍ତା    ନାହିଁ ତିଳେ ଡେରି |
ହୁଉ ହୁଉ ବଢାଉଛି    ସବୁ ଉତ୍ପାଦନ
ଶିଳ୍ପବିପ୍ଳବଦିନରୁ    ଅଦ୍ଭୂତ ବିଜ୍ଞାନ | ୧୭୭
ହସ୍ପିଟାଲ୍ ରାସ୍ତାଘାଟ    ଯାନର ପ୍ରଭାବେ
ଅଳ୍ପାୟୁ ନାହିଁ ମଣିଷ    ଚିକିତ୍ସା ଅଭାବେ |୧୭୮
ଭାରତର ହାରାହାରି    ଆୟୁ ବଢି ବଢି
ଆଉଷଠି ଧରିଲାଣି,    ଡେଇଁବ ସତୁରି |୧୭୯
ଦକ୍ଷିଣ କୋରିଆ ଆଉ    ଭାରତ ଭୂତଳେ
ବିଂଶ ବର୍ଷ ଆୟୁ ଥିଲା    ଶହେ ବର୍ଷ ତଳେ |
ଏ କଥା ଯେ ନ ମାନିବ    ମିଥ୍ୟା ବୋଲି ଭାଳି,
ମିଳି ଯିବ, ଖୋଜୁ ଡାଟା    ଗୁଗୁଲି ହନ୍ତାଳି | ୧୮୧
ଲୋଭନୀୟ ଦେଖି ନାନା    ବଞ୍ଚିବା ଉପାୟ
ପ୍ରେତ ସାଜି ବୁଲିବ କେ    ହୋଇ ଅସହାୟ?୧୮୨
ଆଗପରି ବେଶି ଆଉ    ନ ନେଇ ସମୟ,

ଶୀଘ୍ର ଜନ୍ମ ଘେନୁଛନ୍ତି ପ୍ରେତମ୍ୱା ନିଚୟ |୧୮୩
ଇନ୍ଦ୍ର-ଚନ୍ଦ୍ର-ପିତୃ-ସୂର୍ଯ୍ୟ- ଦେବ-ଲୋକ ଛାଡି,
ଜନ୍ମିବାକୁ ପ୍ରେତାତ୍ମାଙ୍କ ଲମ୍ବା ଏବେ ଧାଡି |
ବିଜ୍ଞାନ ସୁବିଧାମାନ ଯେତେ ଗଢୁଥିବ
ପୃଥିବୀର ଜନସଂଖ୍ୟା ସେତେ ବଢୁଥିବ |୧୮୫
ହେଉ ନାହିଁ ସର୍ପାଘାତ ପ୍ରସବ ମରଣ,
ସଭ୍ୟ ଦେଶେ ନାହିଁ ବାୟୁ- ଜଳ ପ୍ରଦୂଷଣ |୧୮୬
ଭାରତରୁ ପ୍ରଦୂଷଣ ଗଲେ ଅପସରି,
ପରମାୟୁ ନବେ ହେବ ଆମେରିକା ପରି |
ଆଗାମୀ ଦଶ ବର୍ଷକୁ ହେଇ ପାରେ ଶହେ,
ବିଜ୍ଞାନ ଉନ୍ନତି ଯଦି ଏହି ପରି ରହେ | ୧୮୮
ଏଣିକି ଈଶ୍ୱରଙ୍କଠି କରିବ ପ୍ରାର୍ଥନା,
ବିଜ୍ଞାନର ଖୋଲିଦିଅ ସର୍ବ ସମ୍ଭାବନା | ୧୮୯
ବଢିବାକୁ ମଣିଷର ସ୍ୱାସ୍ଥ୍ୟ ପରମାୟୁ,
ଶୁଦ୍ଧ ଥାଉ ପୃଥିବୀର ଖାଦ୍ୟ ଜଳ ବାୟୁ |୧୯୦

ଲଲାଟେନ୍ଦୁ କବି ୨୦୨୦-୦୨-୧୨-୧୯-୫୧

ସ୍ମାର୍ଟ୍ ଆତ୍ମା

ଅଧ୍ୟାୟ- ୧୬: କିଛି ବିଶେଷ ଜ୍ଞାତବ୍ୟ

.

୧୬(କ): କୁନି ପାପ କଣ?

.

ବାଡ ଯେବେ ଦେଉଅଛ କଣା ରଖ ନାହିଁ,
ଛେଳି ପଶି ସବୁ ଗଛ ଦେଇଥିବ ଖାଇ | ୧୯୧

ଯେତେ ଭଲ ହେଉ ଡଙ୍ଗା ଲିକ୍ ରହି ଗଲେ
ସେ କି ପାରି ହେବ ଗଙ୍ଗା? ବୁଡିଯିବ ଜଳେ ! ୧୯୨

ଯେତେ ଥାଉ ଧର୍ମ, କା'ର କରି ଥିଲେ କ୍ଷତି
ଭାଗ୍ୟ ହେବ ଛାରଖାର ଭୋଗି ଅଧୋଗତି | ୧୯୩

କୁନି କଣା ଥିଲେ ନାବେ ପଶେ ଯଥା ପାଣି
"କୁନି ପାପ" ସେହି ଭାବେ ନର୍କେ ନିଏ ଟାଣି | ୧୯୪

ଅପରପୀଡନ କିଏ କହେ କୁନି ପାପ?
ସିଧା ନର୍କେ ପେଲି ଦିଏ ପୀଡିତର ଶାପ | ୧୯୫

ସ୍ମାର୍ଟ୍ ଆତ୍ମା ଏହି ପରି ଦେଖାଇ ଚାଲାକି
ସ୍ମାର୍ଟ୍ କୀଳା ବୁଦ୍ଧି କରି ଘେନିଥାଏ ଡାକି | ୧୯୬

ସ୍ମାର୍ଟ୍ ଆତ୍ମା

ଅଧ୍ୟାୟ- ୧୭: ଆତ୍ମା ଓ ଭାଷାଜାତ୍ୟାଦି ଭେଦ ?

ଆତ୍ମାଟିକୁ ଏତେ ସ୍ମାର୍ଟ୍ କିଏ କରି ଥିଲା,
ଯେଉଁ ଗର୍ଭେ ମନ କଲା ସେ ଗର୍ଭେ ପଶିଲା । କ
ଜାତି ଭାଷା ସମ୍ପ୍ରଦାୟ କିଛି ଭେଦ ନାହିଁ,
ହିନ୍ଦୁ ଗର୍ଭେ ପଠାଣାତ୍ମା ପଶୁ ଖେଦ ନାହିଁ । ଖ
ପରେ ଟ୍ରେନିଂ ହେବ - - ଇଏ ହିନ୍ଦୁ ସେ ପଠାଣ,
ଦ୍ୱିଜ କ୍ଷାତ୍ର ବୈଶ୍ୟ ଶୂଦ୍ର ଡମ ହାଡି ପାଣ । ଗ
ଏ ଭାବେ କରନ୍ତି ଥୋକେ ଗଧ ଆତ୍ମଶୁଦ୍ଧି
ସାତଜନ୍ମ ଗଙ୍ଗାସ୍ନାନେ ନ ହେବ ସଦ୍‌ବୁଦ୍ଧି । ଘ

ଲଲାଟେନ୍ଦୁ କବି ୨୦୨୦-୦୨-୧୨-୧୯-୫୧

# ସ୍ମାର୍ଟ୍ ଆତ୍ମା: ଲଲାଟେନ୍ଦୁ କବି

ଭୋଗି ଦୈନ୍ୟ ପ୍ରହରଣ,
ନିର୍ଘାତ କଷଣ,
ଆତ୍ମା କହେ, "ପ୍ରଭୁଙ୍କ ଏ
କୃପା ବରଷଣ; ୪୩

ଈଶ୍ୱର ମୋହର, ଯେଣୁ
ମୁଁ ଗୋଟେ ନିର୍ଦ୍ଧନ;"
ଅଭ୍ୟନ୍ତରେ ଥାଉ ପଛେ
ପ୍ରଚଣ୍ଡ ଜ୍ୱଳନ । ୪୪

ମାଡୁଆ ଛୁଆ ଯେସନ
ମାଡ ଖାଇ ଖାଇ
କହୁଥାଏ, "ବାଡଉ ଥା,
ଜମ୍ମା କାଟୁ ନାହିଁ ।"
(୪୪କ)
ସ୍ମର୍ଟ୍ ଆତ୍ମାଠାରୁ ନାହିଁ କେ
ଜଗତେ ବେଲଜ୍ଜା,
ଛେଚା ଖାଇ ହସୁ ଥିବ,
ଅସମ୍ଭବ ଉର୍ଜା ।
((୪୪ଖ)

**Lalatendu Kabi**

ସ୍ମାର୍ଟ୍ ଆତ୍ମା